କବି ଶ୍ରୀ ବୈଷ୍ଣବଚରଣ ପାଣିଗ୍ରାହୀଙ୍କ ବିରଚିତ

# ରଙ୍ଗସଭା ସୁଆଙ୍ଗ ।

## କଂସବଧ ଚରିତ ।

ଶ୍ରୀ ବିନୋଦବିହାରୀ ଦାଶଙ୍କ ଦ୍ୱାରା ସଂଶୋଧିତ ।

ଶ୍ରୀ ରାଜେନ୍ଦ୍ରନାଥ ଦାଶଙ୍କ ଦ୍ୱାରା

ଦ୍ୱିତୀୟବାର ପ୍ରକାଶିତ ।

କଟକ, ଚନ୍ଦ୍ରୋଦୟ ଯନ୍ତ୍ରାଳୟରେ ମୁଦ୍ରିତ ।

Printed by H. K. Das,
Chandrodaya Press,
CUTTACK.

*1931.*

[redacted]

# ରଙ୍ଗସଭା ସୁଆଙ୍ଗ ।

## କଂସବଧ ଚରିତ ।



ଶୁଣ ହେ ସୁଜନ ଲୀଳାଗୀତ ଉତ୍ତର ଶ୍ରୁତି । ଦଶମସ୍କନ୍ଧ ଅଟେ ଶୁକମୁନି ଯା କହନ୍ତି । ୧ । ପୁଣ ବସୁଦେବଙ୍କୁ କହନ୍ତି ବ୍ରହ୍ମାସୁତ । ଲଭିବ ସୁଗତି ଶୁଣି ଶ୍ରୀକୃଷ୍ଣଚରିତ । ୨ । ନିମିରାଜାଙ୍କ ଅଗ୍ରତେ ସୁବାକ୍ୟ ଦ୍ୱାପରେ । ଅବଧୂତ ମୁଖୁଁ ଯଦୁରାଜନ ଶୁଣିଲେ । ୩ । ସୁରାସୁର ମୁନି ଧ୍ୟାନେ ଶଙ୍କି ଯା ଚରଣ । ଉଦ୍ଧବ ହୋଇଲେ ମୁକ୍ତି ସେ ପଦ ସ୍ମରଣ । ୪ । ସେହି ପ୍ରଭୁ ଦେବହୂତେ ମର୍ତ୍ତ୍ୟେ ହୋଇ ଜାତ । ପୃଥ୍ୱୀଭାର ଉଶ୍ୱାସିଲେ ନାଶି କଂସ ଦୈତ୍ୟ । ୫ । ଭକ୍ତିଭାବେ ତାଙ୍କ ପଦ ସେବ ଅନୁକ୍ଷଣ । ସୁସଙ୍ଗୀତ ଗାଉଛି କହେ ବୈଷ୍ଣବ-ଚରଣ । ୬ ।



### ସଖିମାନଙ୍କର ଆସିବା ଗୀତ ।

ଆସ ସଖି ଯିବା ଦେଖି ଶ୍ରୀଖଣ୍ଡଚୂଳିଆ ଗୋ । ଜାଣେ କେତେ ନାଟକୂଟ କାଇଞ୍ଚମାଳିଆ । ମିତ କାଇଞ୍ଚମାଳିଆ ଗୋ । ପଦ । ଦେଖି କୃଷ୍ଣଲୀଳା ଖେଳା, ଯମୁନାକୂଳିଆ । ମିତ । ଯମୁନାକୂଳିଆ ଗୋ । ୧ । ଅଘା ବକା ଷଣ୍ଢ ମାରି, ରକ୍ଷା କଲେ ଗୋପପୁରି କାଳିନ୍ଦରେ ଦଳି କାଳି ସେ ଯାମୁଡ଼ାଳିଆ । ମିତ । ସେ ଯାମୁଡ଼ାଳିଆ ଗୋ । ୨ । ଗୋଠେ ଗୋଷ୍ଠୁ ଆସିବା କାଳେ, ଗୋପାଳ ବାଳକ ମେଳେ, ବେଣୁ ବଜାଇ ସୁସ୍ୱରେ ବରଜଧୂଳିଆ । ମିତ । ବରଜଧୂଳିଆ ଗୋ । ୩ । କହେ ବୈଷ୍ଣବଚରଣ, ଧ୍ୟାୟି ତାଙ୍କୁ ଅନୁକ୍ଷଣ, ପାଇବ ରଖିଲେ ମନ, ଘନଶ୍ୟାମଳିଆ । ମିତ । ଘନଶ୍ୟାମଳିଆ ଗୋ । ୪ ।



କଂସର ସଭାମଧ୍ୟେ ପ୍ରବେଶିବା ଗୀତ ।

କେଡ଼େ ଶୋଭା ସଭା ମଧ୍ୟେ କଂସ ରାଜନ । ଛନ୍ଦି ଅଢ଼େଣୀ ଚାମର ପଡୁଅଛୁ ଘନ ଘନ । ଘୋଷା । ସ୍ୱର୍ଣ୍ଣ ଘଟେ ପୂର୍ଣ୍ଣଜଳ, ତଥିପରେ ଚୂତଡ଼ାଳ ଚତୁଃପାର୍ଶ୍ୱେ ପୁଷ୍ପମାଳ,କେଡେ ଯତନ ।୧। ଦ୍ୱାରେଦ୍ୱାରେ ରମ୍ଭାତରୁ, ଶୋଭା ପାଉଅଛୁ ଦୂରୁ, ଝାଲର ଚାନ୍ଦୁଆ ଚାରୁ, ହରୁଛୁ ମନ ।୨। ହସ୍ତୀ ଅଶ୍ୱ ମାଳ ମାଳ, ଅସନ୍ତ ଡେଜଣ ଶାଳ, ଧାଡ଼ିଧାଡ଼ି ହୋଇ ମଲ୍ଲ, ସଭରେ ପୂର୍ଣ୍ଣ ।୩। ଉଡୁଛୁ ପତାକା ମାନ, ସିଂହଦ୍ୱାରେ ରାଜନ୍ଦନ, ରହେ ବୈଷ୍ଣବଚରଣ କରଯୋଡ଼ଣ । ୪ ।

ଦ୍ୱାରୀ ଅସିବା ଗୀତ ।

ଦ୍ୱାରୀ ଅସେ ତର ତର ହୋ । ବାହୁଘୁଞ୍ଚ ଯିବ ଘର ଲୋ । ଶୁଣି ମନ୍ତ୍ରୀ ଡାକ, ଲାଗିଲା ଚମକ, ମାଡ଼ ଖାଇବାକୁ ଡ଼ର ଲୋ ।୧। କସ କାର୍ଯ୍ୟହେଲା, ମୋତେ ଡକାଗଲା, ଦେହ କମ୍ପେ ଥର ଥର ଲୋ । ୨ । ଚାକର କରୁଛୁ, ଦାନା ଖାଉଅଛୁ, କେତେକାଳୁଁ ମୁଁ ତାଙ୍କର ଲୋ ।୩। କହେ ବଇଷ୍ଣବ ଯାହା ହେଲେ ହେବ, ଯିବ ରାଜାଙ୍କ ଛାମୁର ଲୋ । ୪ ।

ନାରଦ ଓ କଂସର ଉକ୍ତିଉକ୍ତି ।

ବୋଲନ୍ତ ବଚନ, ବ୍ରହ୍ମାଙ୍କ ନନ୍ଦନ, ଶୁଣ ଅରେ କଂସାସୁର । ମରିବାକୁ ଡର, ନାହିଁ କରେ ତୋର ବସୁ ନଣଙ୍କ ଶତ୍ରୁ ରେ । ତୋତେ ମାରିବା ପାଇଁ । ଗୋପେ ଜନ୍ମିଲେଣି ଯାଦବରାହି ରେ ।୧। ଯେଉଁ କନ୍ୟା ଗୋଟି, ହସ୍ତୁଗଲା ଛୁଟି, ପିଟନ୍ତେଣ ଶିଳାପରେ । ସେହ ଯୋଗ ମାୟା, କହିଗଲେ ଯାହା, ନାହିଁ କ ତୋର ମନରେ ରେ । ଶତ୍ରୁ ତୋହର କେତେ । ନଗ୍ରେ ରହିଅଛନ୍ତ ଗୁପତେ ରେ ।୨। ପ୍ରହରୀ ତୋହର ଉଗ୍ରସେନ ଘର, ଅଙ୍କରେ ତୋର ଫେରଇ । ଯେତେ ନରନାରୀ, ସର୍ବେ ତୋ ବଇରୀ, ଜାଣିଥାଅ ହେତୁକରି ରେ । ଯେତେ ଅମରଗଣ । ଶତ୍ରୁ ତୋହର ସମସ୍ତେ ଜାଣ ରେ । ୩ । ମରଣକୁ

ତୋର, ସକଳ ଅମର ଅନାଇ ବସିଅଛନ୍ତି । କରି କୁମନ୍ତ୍ରଣା, ନ ଧଅନ୍ତି ଶଙ୍କା, ଅମଙ୍ଗଳ ଘୋଷୁଥାନ୍ତି । ତାଙ୍କୁ ବିଶ୍ୱାସ କଲେ । ନାଶ ହେବୁ ବଇଷ୍ଣବ ବୋଲେ ରେ । ୪ ।

——※——

ବଚନିକା ।

କଂସ - ମୁନିବର ? ନାମ ଶୁଣି ମୋର କମ୍ପେ ତ୍ରିପୁର ।
କି କରି ପାରିବ ସେହି ଗୋପାଳ କୁମର ।
ନାରଦ— ଜାଣୁନାହୁଁ କଂସ ସେ ଯେ ରାକ୍ଷସ ବଇରୀ ।
ଦୈତ୍ୟ ବିନାଶ କାରଣେ ମର୍ତ୍ତ୍ୟ ଅବତରି ॥
କଂସ - ଭୟପାଇ ବନ୍ଦିମାନ୍ତ ଗଲେ ଯେ ପଳାଇ ।
କଦାପି ସେ ମୋତେ ନାଶ କରି ନ ପାରଇ ।
ନାରଦ—ପୂତନାର ପ୍ରାଣ ବାଲ୍ୟକାଳୁ ଅଛି ମାରି ।
ସାମାନ୍ୟ ନ ମଣ ତାଙ୍କୁ ମନୁଷ୍ୟର ପରି ॥
କଂସ —ପୂତନାର ସ୍ତନ ବିଷପ୍ରାନେ ଉଠେ ଶିର ।
ମୋହର ସେବକ ଅଟଇ ଦେବ ପୁରନ୍ଦର ।
ନାରଦ—ପୁରନ୍ଦର ଦର୍ପ ଭାଙ୍ଗି ମନ୍ଦର ଧଇଲା ।
ଗୋରୁ ଚରଇଣ ଯାଇ ବକାକୁ ମାଇଲା ।
କଂସ — ସମସ୍ତ ଗୋପଳ ମିଳି ତୋଳିଲେ ମନ୍ଦର ।
ଗୁରୁ ଚଢ଼ାଇଲା ମାରି ଲଭିଲା କି ଫଳ ॥
ନାରଦ— ଗୋପାଳ ନୁହନ୍ତି ସେ ଯେ ଦେବତା ସକଳେ ।
ବନସ୍ତରେ ଦାବଅଗ୍ନି କପରି ଭକ୍ଷିଲେ ॥
କଂସ— ମଲ୍ଲ ପଠାଇ ମାରିବି ଗୋପେ ଯେତେ ବୀର ।
ନାରଦ — କି କରିବେ ମଲ୍ଲ ଗଲେ ମରିବେ ସକଳ ॥
କଂସ — କୁହନ୍ତୁ ନାରଦ ଶତ୍ରୁ ମାରିବି କପରି ।
କିବା ନନ୍ଦ ଆଲେ ପଶି ବିନାଶିବ ହରି ॥

ନାରଦ- ଗୋମନ୍ତଙ୍କ ଶାପରେ ଭୁତ ନ ପାରିବୁ ଯାଇ ।
ସେ କାଳନ୍ଦୀ ମଧ୍ୟେ କାଳୀଶିରେ ପାଦଦେଇ ।
କଂସ — କି ଉପାୟ କଲେ ନାଶହେବ ଗୋପକୁଳ ।
କପଟ ନ କରି ଫେଡ଼ି କହ ମୁନିବର ॥
ନାରଦ— ଆମ୍ଭବାକ୍ୟେ ରଙ୍ଗସଭା କରଅ ନିର୍ମାଣ ।
ନିମନ୍ତ୍ରଣ କରି ବେନି ଭାଇଙ୍କି ତୁ ଆଣ ।

---

## କଂସର ଭାବନା ଓ ମନ୍ତ୍ରିମାନଙ୍କର ପ୍ରବୋଧ ।

କଂସ ନୃପମଣି, ନାରଦଙ୍କ ବାଣୀ, ଶୁଣି ମନେ ପାଇ ଖେଦ । ମନ୍ତ୍ରିଙ୍କି ଡକାଇ, ସକଳ କହଇ, ଯାହା କହିଗଲେ ନାରଦ । ମନ୍ତ୍ରୀବର ! ବିବେକ ହଜିଲା ମୋର ।୧। ସାମାନ୍ୟ ଗୋପାଳ, ବୋଲି ନନ୍ଦବାଳ ମନରେ ବିଚାରି ଥିଲି । ଶୁଣି ତା ଚରିତ, ହୋଇଲି ସ୍ତମ୍ଭିତ, ବିଷାଦନ ହେଲି ମଲି । କହ କହ । କରିବି କିସ ଉପାୟ ।୨। ମୁହିଁ କଂସାସୁର ଭୋଜ ବଂଶ ବୀର, ଦେବତା ମୋତେ ଖଟନ୍ତି । ସେ ନନ୍ଦ ଗଉଡ଼, ପୁଅ ଏତେ ବଡ଼, ତାହା ପାଇଁ ମନେ ଭୀତ । ବୀରବର । ମାରିବା ଉପାୟ କର ।୩। ମୁଷ୍ଟିକ କହଇ, ଶୁଣ ନରସାଇଁ, ତେଜ ତେଜ ମନୁ ଚିନ୍ତା । ମୁଷ୍ଟା ଘାତେ ତୋର, ଶତ୍ରୁ ହେବ ଚୂର, କାଲି ଶୁଣିବ ବାରତା । ନୃପମଣି । ଆଜ୍ଞା ଦିଅ ଏହିକ୍ଷଣି ।୪। ଚାଣୁର କହଇ ଚରଣ ଦେଖାଇ, ପାଦେ କରିବି ମୁଁ ପଦା । କୋପ ହେଲେ ଗୋପ-କୁଳ ହେବ ଲୋପ, ମଡ଼ା ଦେବି ଗଦା ଗଦା । ନୃପବର । ଏ ସତ୍ୟ ବଚନ ମୋର ।୫। ଶୁଣି ରାଜା କଂସ, କରି ପରିତୋଷ, ରତ୍ନ ଭୂଷଣ ଦେଲା । ଶୀଘ୍ରେ ଅକ୍ରୂରଙ୍କୁ, ଡାକି ଆଣିବାକୁ ତୁରିତେ ଦୂତ ପେଷିଲ । ତୋଷଟୋଡ଼ି । ବୈଷ୍ଣବ କହଇ ଚିତେ ।୬।

---

## ଅକ୍ରୂର ଆସିବା ଗୀତ ।

ଶୁଣି ରାଜା ଆଜ୍ଞା ଦୂତ ଆସେ ତ୍ୱରିତ । କଂସ ଆଗେ ଯାଇଁ କରଇ ପ୍ରଣିପାତ । ଘୋଷା । କିସ କରିବ ଭୃତ୍ୟ, ବୋଲନ୍ତି ନରନାଥ, କପାଇଁ ମୋ ପୁରକୁ ପେଷିଲେ ଦୂତ । ଆଜ୍ଞା ହୋଇବ ଯାହା ପାଳିବ ନିଶ୍ଚେ ତାହା, ସେବାରେ ରହିଥିବ ଅନୁବରତ ।୧। ଖାଇ ତୁମ୍ଭର ଅନ୍ନ, ସୁଖେ କାଟଇ ଦିନ, ଧରିଅଛି ଜୀବନ ମଧୁପୁରେ ରତ । ଆହେ ଭୋଜ ରାଜନ, ଆଜ୍ଞା ଦିଅ ବହନ, ବୈଷ୍ଣବ ଚରଣ ପାରେ ସାଧିତ । ୨ ।

## କଂସର ଅକ୍ରୂର ପ୍ରତି ଆଜ୍ଞା ।

କହେ କଂସାସୁର, ଶୁଣରେ ଅକ୍ରୂର, ଏ ମଥୁରାପୁର, ଆଜହୁଁ ତୁମ୍ଭର, ତୁମ୍ଭେ ଏହା ରକ୍ଷାକର । ଶତ୍ରୁର ନିଧନ, ନ ଶୁଣିଲେ ପ୍ରାଣ, ଥିରା ନୁହେ ଜାଣ, ଖଣ୍ଡ ପରି ହାଣି, ଦେଉଅଛି ନିରନ୍ତର ରେ । ଅକ୍ରୂର । ଦେଉଅଛି ନିରନ୍ତର । ୧ । ଯାଅ ଗୋପପୁର ବିଳମ୍ବ ନ କର, ରଥ ଘେନି ଯିବୁ, ନନ୍ଦକୁ କହିବୁ, ଆମ୍ଭ ବୃତ୍ତାନ୍ତ ସକଳ । ନେଇ ଆମ୍ଭ ଲେଖା, ଗୋପାଳଙ୍କୁ ଦେଖା, କରାଇବୁ ତଙ୍କା ଦେଇଣ ଚମକ, ପଡ଼ିବ ଯେସନେ ଚହଲ ରେ । ଅକ୍ରୂର ।୨। କହ ତୋ ମଉଳା, ଧନୁଯାତ୍ରା କଲ, ଦେଖି ଯିବେ ପରା, ତୋର ବେନି ବଳା, ଏହି ଆଜ୍ଞା ରାଜାଙ୍କର । ରଥ ଅଛି ସଜ, ଘେନିଯିବ ଆଜ, ତୁ ନୋହିଲେ ରାଜ, ହେବ ଦଗାବାଜ, କହେ ବୈଷ୍ଣବ ଛାର । ୩ ।

## କଂସ ପ୍ରତି ଅକ୍ରୂରର ପ୍ରବୋଧ ।

ଏ ବାଣୀ ଶୁଣି ଅକ୍ରୂର ବୋଲଇ ବଚନ । ଏ ଛାର କଥାକୁ କପାଁ ହବୁଛ ଗଞ୍ଜନ ହେ ।୧। କାଲି ପ୍ରଭାତରୁ ଉଠି ରଥ ଘେନିଯିବ । କପଟ ଭିଆଇ ରାମକୃଷ୍ଣଙ୍କୁ ଆଣିବ ହେ ।୨। ଧନୁଯାତ୍ରା ଉତ୍ସବ ଭିଆଅ ତୁମ୍ଭେ ଯାଇଁ । ନନ୍ଦକୁ କହି ଆଣିବି ରଥରେ ବସାଇ ହେ ।୩। ବୋଲିବ ତୋ ମାମୁଁ ଧନୁଯାତ୍ରା କରୁଅଛି । ତୁମ୍ଭଙ୍କୁ ଦେଖିବା ପାଇଁ ଶରଧା କରିଛି ହେ ।୪। ବାଳକାଙ୍କୁ

ତୁମ୍ଭଙ୍କୁ ସେ ନେତ୍ରେ ଦେଖି ନାହିଁ । ତେଣୁ ଦୂତପଣେ ମୋତେ ପଠାଇଅଛନ୍ତି ହେଇ ହେ । ୫ । ବହନ ହୋଇଣ ଆସି ରଥେ ମୋର ବସ । ନିହେ ବୈଷ୍ଣବ ନ ଗଲେ ହୋଇବ ବିନାଶ ହେ । ୬ ।

କଂସ ଅକ୍ରୂରକୁ ପୌରୁଷ କରିବା ଓ ପତ୍ରଦେବା ।

ଶୁଣି କଂସ ହୋଇ ତୋଷ ବୋଲେ ରେ ଅକ୍ରୂର । ତୋହପର ଉପକାରୀ ଲୋକ ନାହିଁ ମୋର ।ପଦା ନାମ ବହିଛନ୍ତି ପଦା କାହ୍ନୁ ହଲଧର ଗଉଡ଼ ହୋଇଣ କେଉଁ ସାହାଯ ତାଙ୍କର ।୧। ଏତେ କହି ମନ୍ତ୍ରି ମୁଣ୍ଡେ ବନ୍ଧାଇଲେ ପାଟ । ପତ୍ର ଖଣ୍ଡିଏ ଲେଖିଲେ କରାଇ ଅକଟ । ୨ । ଶ୍ରୀଧାରାଧି ଧୀରବର ମଥୁରା ଈଶ୍ୱର । ପତ୍ର ଲେଖୁଛନ୍ତି ଶ୍ରୀ ପ୍ରତାପୀ କଂସାସୁର । ୩। ଏହି ଆଜ୍ଞା ମୋହର ରେ ନନ୍ଦ ନୃପବର । ତୁମ୍ଭ ପାଶକୁ ପେଶିଲି ଗୋପେ ମୁଁ ଅକ୍ରୂର । ୪ । ବହନ ହୋଇଣ ଅସ ଘେନ ଭେଟି ଭାର । ରାମକୃଷ୍ଣଙ୍କୁ ପଠାଅ ଅକ୍ରୂର ସଙ୍ଗର । ୫ । କାଲି ଚତୁର୍ଦ୍ଦଶୀ ଆମ୍ଭ ଧନୁଯଜ୍ଞ ହେବ । ଆଜ୍ଞା ମେଣ୍ଟିଲେ ଗୋପରେ ରହି ନ ପାରିବ । ୬ । ଏହିପରି ପତ୍ରଲେଖି ଅକ୍ରୂରକୁ ଦେଲେ । ପତ୍ରଘେନ ବଇଷ୍ଣବ ଗୋପକୁ ଚଳିଲେ । ୭ ।

ଅକ୍ରୂର ଗୋପକୁ ଯିବା ଉଦ୍ୟୋଗ ।

ରାଗ—ରେଖି ।

ପତ୍ର ଘେନିଣ ଅକ୍ରୂର, ମନେ କରଇ ବିଗ୍ୱର, ରାମକୃଷ୍ଣ ଦାମୋଦର ସତେ ଦେଖିବି । ନେତ୍ରେ ଦେଖିଲେ ସେ ରୂପ, ଖଣ୍ଡିବ ଅଶେଷ ପାପ, ଧାହି ଧାହି ବୋଲି ତାଙ୍କ ପାଦେ ଲେଟିବି । କେଉଁଜନ୍ମେ କି ତପ କଲି । ଏ ପାପ ନୟନ ହରି ଭେଟିବି କାଲି ।୧। ବୋଲିବି ଆହେ ମାଧବ, ତୁମ୍ଭେ ମୋ ଜୀବନ ଧବ, ସତେ କି ସୁଦୟା ହେବି କିଙ୍କର ପ୍ରତି । ତାଙ୍କ ପଦ ରଜ ଧୂଳି, ମୋ ମସ୍ତକେ ଦେବି ବୋଲି ମୁଖରେ ନାମ ଉଚ୍ଚାରି ତୋଷିବି ମତି । ପାଦ ଧରି ପଢ଼ିବି ଶୋଇ ।

ଗିରିଧର ଚକ୍ରଧର ନେବେ ଉଠାଇ ।୨। ସତେ ତାଙ୍କ ଦୟା ହେବ ଏ ଦୁଃଖୀର ଦୁଃଖ ଯିବ, ତେବେ ଭେଟିବି କେଶବ ସନ୍ନିଧେ ମୁହିଁ । ହେବ କେତେ ଶୁଭଦିନ, ପାଇବି ଶ୍ରୀ ଭଗବାନ, ତେବେ ଏ ପାପ ଜୀବନ ହୋଇବ ଧନ୍ୟ । ବନ୍ଦେ ବଇଷ୍ଣବ ଚରଣ । ନନ୍ଦସୁତ-ପାଦପଦ୍ମେ ରହୁ ମୋ ମନ । ୩ ।

ସଖାସହ ରାମକୃଷ୍ଣଙ୍କର ଗୋଗୋଷ୍ଠକୁ ଗମନ ।

ଗୋଗୋଷ୍ଠକୁ ହେଲେ ବାହାର, ସେ କାହ୍ନୁ ହଳଧର । ଘୋଷା ସଙ୍ଗେ ଛନ୍ତି ସଖାବୃନ୍ଦ, ଧରି କରେ ଶିଙ୍ଗା ଛନ୍ଦ, ମନରେ ହୋଇ ଆନନ୍ଦ, ପୀତଅମ୍ବର ।୧। ମସ୍ତକେ ଚନ୍ଦ୍ରିକା ଚୂଳ, କର୍ଣ୍ଣରେ ସ୍ୱର୍ଣ୍ଣ-କୁଣ୍ଡଳ, ନାଶାରେ ତିଳକ ଗାର, ଗଳାରେ ହାର ।୨। କଟିରେ ପୀତବସନ, କୁଞ୍ଚ ଦଶଇ ଯତନ, ଶ୍ରୀଅଙ୍ଗେ ବୋଳି ଚନ୍ଦନ, ପାଦେ ନୂପୁର । ୩ । ରୁଣୁଝୁଣୁ ଶବ୍ଦକରି, ଗୋଗୋଷ୍ଠେ ହେଲେ ମୁରାରି, ବଇଷ୍ଣବ ଗୀତ କରି, କଲା ପ୍ରଚାର । ୪ ।

ଅକ୍ରୂରର ପ୍ରବେଶ ଓ ବନ୍ଦନା ।

ଗାଈ ଦୁହୁଁ ଛନ୍ତି ସଖା ସଙ୍ଗର । ଏହି ସମୟେ ପ୍ରବେଶ ଅକ୍ରୂର ।। ଯାଇ ଗୋଗୋଷ୍ଠଦ୍ୱାରେ ଉଭା ହେଲା । ଭିତରେ ଯିବ ବୋଲି ବିଚାରିଲା ।୨। ଅକ୍ରୂର ମନ ବୁଝିବା ନିମନ୍ତେ । ମାୟାଧର ମାୟା କଲେ ତୁରିତେ । ୩ । ଗୋପ କୁମରେ ସର୍ବେ କୃଷ୍ଣ ହୋଇ । ଗୋରୁ ଦୁହୁଁ ଛନ୍ତି ଭାଣ୍ଡ ପତାଇ ।୪। ତାହା ଦେଖିଣ ଅକ୍ରୂର ଚକିତ । ମନେ ବିଚାରେ ଏକ ଅଦଭୁତ । ୫ । ସକଳେ ଏକ ରୂପ ଦିଶୁଛନ୍ତି । କେହୁ ଚିହ୍ନିବି ରାମ ଶ୍ରୀପତି ।। ଭାବଇ କିବା ମୋ ଆସିବା ଜାଣି । ମାୟା ଭିଆଣ କଲେ ଚକ୍ରପାଣି ।୭। ଏହା ବିଚାରି ମନେ କଲା ସ୍ତବ । ତୁଣ୍ଡେ ଉଚ୍ଚାରଣ କୃଷ୍ଣ କେଶବ ।୮। ଅନ୍ତର୍ଯ୍ୟାମୀ ନାରାୟଣ ଅନନ୍ତ । ତିନି ଭୁବନେ ତୁମ୍ଭ ନାମ ଖ୍ୟାତ । ୯ । ଶତ୍ରୁ ନୁହଇ ପ୍ରଭୁ ମୁଁ ତୁମ୍ଭର । ମୋ ପ୍ରତି କପାଇଁ ଛଳନାକର ।୧୦। ସର୍ବଦା କାଳେ ମୁଁ

ଭୁମ୍ଭର ଭୃତ୍ୟ । ହୁଅ ସଦୟ ମୋତେ ଗୋପୀନାଥ ।୧୧। ଭକ୍ତ ହୃଦୟ ଜାଣି ହୃଷୀକେଶ । ଚତୁର୍ଭୁଜ ହୋଇଲେ ପୀତବାସ ।୧୨ ଗାଈଦୁହାଁନ୍ତି ନକଣ୍ଠ ଫିଟିପଡ଼ । ବେଳବୁଟକ ତା ବାନ୍ଧନ୍ତି ସଜାଡ଼ ॥ ବେନକରେଣ ଦୁହନ୍ତି ଛନ୍ତି ଗାଈ । ଅକ୍ରୂର ତାହା ଦେଖିଲା ଅନାଇ ॥ ଜାଣିଲା ଏହୁ ନନ୍ଦେ ପୀତବାସ । ରଥୁଁ ଓହ୍ଲାଇ ଭୂମେ ଲୋଟି ଦାସ । ବାହୁ ବାହୁ ବୋଲି ଲୋଟି ପଡ଼ୁର । ଦେଖି ତୋଳିଲେ ବ୍ରହ୍ମାଣ୍ଡ ଠାକୁର । ୧୬ । କେଉଁ କାରଣେ କରୁଛ ଗମନ । ହସି ପୁଛୁଲେ ବୈଷ୍ଣବ ଚରଣ । ୧୭ ।

ରାମକୃଷ୍ଣଙ୍କର ମଥୁରାର କୁଶଳ ପ୍ରଶ୍ନ ।

କହରେ ଅକ୍ରୂର କସ ମଥୁରା ଖବର ରେ । କୁଶଳେ ଅଛନ୍ତି ମୋର ମାମୁ କଂସାସୁର ରେ । ପଦ । ମାଇଁମାନଙ୍କ କୁଶଳ, ବାର୍ତ୍ତା କହ ମୋ ଆଗର । ଅଜା ଉଗ୍ରସେନ କି କୁଶଳେଛନ୍ତି ମୋର ରେ । ୧ । ମାତା ଦେବକୀ ମୋହର, ପିତା ବସୁଦେବ-ଙ୍କର, କୁଶଳେ ଅଛନ୍ତି ସେ କି ନ ହୋଇ ଅଧୀର ରେ । ୨ । ଗୋରୁ ବତ୍ସା ସଙ୍ଗେ ନେଇ, ବନେ ବୁଲୁ ବେନଭାଇ, ବନ ଫଳ ମୂଳ ଖାଇ, କାଟୁଥାଉଁ କାଳରେ ହେ । ୩ । ରାଜାର ଭଣଜା ହୋଇ, ମାମୁଁ ଘର ଗଲୁନାହିଁ, ବୈଷ୍ଣବ ଚରଣ କହ ଯିବୁଁ ମଧୁପୁର ରେ । ୪ ।

ଅକ୍ରୂରର ଶ୍ରୀକୃଷ୍ଣଙ୍କ ଆଗରେ ମଥୁରା ବିଷୟ କଥନ ।

ଅନ୍ତର୍ଯାମୀ ନାଥ ପ୍ରଭୁ ବ୍ରହ୍ମାଣ୍ଡ ଈଶ୍ୱର । କେଉଁ ବିଷୟ ତୁମ୍ଭଙ୍କୁ ଅଛି ଅଗୋଚର ହେ । ଭୃତ୍ୟଶର । ବଢ଼ିବାକୁ ବୋଲୁଛ ଏମନ୍ତ ହେ । ୧ । କଂସର କପଟ ତୁମ୍ଭେ ଜାଣ ପଦ୍ମନାଭ । ତୁମ୍ଭଙ୍କୁ ନେବାକୁ କରୁଅଛି ଧନୁଯାଗ । ସେଥିପାଇ । ରଙ୍ଗସଭା ଅଛି ଯେ ଛାଇଲେ ହେ । ୨ । ମୋତେ କହିଅଛି ବେଗେ ରଥ ଘେନଯାଅ । ରାମ କୃଷ୍ଣଙ୍କୁ ବସାଇ ବହନ ଅଣାଅ । ତେବେ ମୋର । ରଙ୍ଗମଞ୍ଚ ଦଶିବ ସୁନ୍ଦର ହେ ॥ ସହସ୍ର ଭାର ଗୋରସ ନନ୍ଦ ଘେନି ଯିବେ । କଂସ ନୃପତି ଆଗରେ ନେଇଣ ଭେଟିବେ । ସେ ବଇଷ୍ଣବ । ତେବେ ଗୋପେ ନଷ୍ଟ କରିବେ ରହିବ ହେ । ୪ ।

## ଅକ୍ରୂରର ନନ୍ଦଙ୍କୁ ପତ୍ର ପ୍ରଦାନ ।

ମେଲାଣି ହୋଇ ଅକ୍ରୂର, ପ୍ରବେଶ ହୋଇଲା ନନ୍ଦ ଗ୍ରାମୁର ହୋ। ପାଦେପଡ଼ି କରି ନମସ୍କାର, ଅକ୍ରୂର ସେ । ୧ । ବୋଲଇ ଶୁଣ ବଚନ, ପତ୍ର ଦେଇଅଛି କଂସ ରାଜନ ହୋ । ପେଷ ରାମକୃଷ୍ଣଙ୍କୁ ବହନ, ରାଜନ ହେ । ୨ । ଆବର କହନ୍ତି ମୋତେ, ନେବ ମୁଁ ତାହାଙ୍କୁ ବସାଇ ରଥେ ହେ । ରଙ୍ଗସଭା ଦେଖିବା ନିମନ୍ତେ, ରାଜନ ହେ । ୩ । ଗୋପେ ଯେତେକ ଗୋପାଳ, ଦହି ଦୁଧ ଘିଅ ଘେନିଣ ଚାଲ ହେ । ଭାର ସହସ୍ରେ କରିଣ ଠୁଳ ରାଜନ ରେ ।୪। ଧନୁଯାତ୍ରା କରି କଂସ, ଭଣଜାମାନଙ୍କୁ କରିଛି ଆଶ ହେ । ଦେଖି-ବାକୁ ଶରଧା ବିଶେଷ, ରାଜନ ରେ ।୫। ବହନ ହୋଇଣ ଚଳ, ଉଚ୍ଛୁର ହୋଇଲେ ଶାସ୍ତି ମୋହର ହେ । କହେ ବଇଷ୍ଣବ ଯୋଡ଼ିକର, ରାଜନରେ । ୬ ।

## ନନ୍ଦର ଶୋକ ।

ଅକ୍ରୂର ମୁଖୁଁ ନନ୍ଦ ଏସନ ଶୁଣି । ବଜ୍ର ପଡ଼ିଲା ଆସି ଶିରେ କି ଜାଣି ସେ । କରେ ରୋଦନ । ସତେ କି ଘେନିଯିବୁ କଳାବଦନ ରେ ।୧। ଏ ବୃଦ୍ଧ ବୟସରେ କୁମର ଦୁଇ । କେତେ ତପ କରିଣ ଅଛଇ ପାଇ ରେ । ମଥୁରା ଗଲେ । ଫେରି କି ସତେ ଅଉ ଆସିବ ଭଲେ ରେ । ୨ । ମାମୁ କଂସ ଅଛଇ କଂସେଇପରି । ଅକାରଣେ ପୁଅଙ୍କୁ ଦେବନି ସେ ମାରି ରେ । ପେଶିବ ନାହିଁ । ଯାହା କରିବ କରୁ ପଛକେ ସେହି ରେ । ୩ । ନୟନ ପ୍ରତିମା ମୋ କୁମର ଦୁଇ । ତାଙ୍କୁ ମୁଚୁଣ୍ଡି କେମନ୍ତେ ବଞ୍ଚିବ ମୁହିଁ ରେ । ଯାଅ ତୁ ଫେରି । କହଇ ବଇଷ୍ଣବ ପାଣି ବିଚାରି ଯେ । ୪ ।

## ଯଶୋଦାଙ୍କର ଶୋକ ।

କୃଷ୍ଣ ମଧୁପୁର ଯିବା ଶୁଣି ନନ୍ଦରାଣୀ । କାନ୍ଦି କାନ୍ଦି କହନ୍ତି ଅକ୍ରୂରଙ୍କୁ ବାଣୀ । ଶୁଣ ବାବୁ ଆମ୍ଭଗିର । ନେବଷିତୂଳାକୁ ପାଶୁ ନ କର ଅନ୍ତର । ୧ । ତଣ୍ଟିରେ ଦେଇଣ ଛୁରି ଯାଅ ପଛେ ମାରି ।

ନୋହିଲେ ନୟନ ବେନି ଯକାଥ ମୋ ଖୋଲ । କଥା ଯୁଗେ ଯୁଗେ ଥାଉ । ମଥୁରା ନ ଯାଇ କୃଷ୍ଣ ଗୋପପୁରେ ରହୁ । ୨ । ଘରକରଣା ମୋହର ଅଟଇ କହ୍ନାଇ । ଅନ୍ଧ ହୋଇଯିବେ ଶୁଣି ଗୋପପୁର ଗୋଷ୍ଠି । ଗୁହିଁ ତା ଚନ୍ଦ୍ରମୁଖକୁ । ଚୁମ୍ବଦେଇ ଭୁଲିଥାଉଁ ସ୍ୱର୍ଗର ସୁଖକୁ । ୩ । ଛଳାଇ ଘେନଣ ଯିବ ମୋ ଅଞ୍ଚଳନିଧି । ଛଳକରି ପେଷିଅଛୁ ତୋତେ କଂସ ଯଦ୍ଦ । ଦଅ ଜହର ମୋ ତୁଣ୍ଡେ । ତେବେ ରାମକୃଷ୍ଣ ଘେନିଯିବ ବ୍ରଜଦାଣ୍ଡେ । ୪ । ନ ନଥ ଅନ୍ତୂର ଦୁଃଖିସଙ୍ଗାଳିକ ମୋର । ଜଗମୋହନ ମୋ ନୀଳମଣି ଗଳାହାର । ରକ୍ଷ୍ୟ ଛାଡ଼ିଦେଉ ମୋତେ । ବଇଷ୍ଣବ ପଛେ ଭିକ ମାଗିବ ଜଗତେ । ୫ ।

କୃଷ୍ଣଙ୍କୁ କାଖରେ ଘେନ ଯଶୋଦାଙ୍କ ଶୋକ ।

ଆହା ବାଛୁ ଦୁଃଖିଧନ ନୀଳମଣି ରେ । କହ୍ନାଇ କହ୍ନାଇ କାହାକୁ ଡାକିବି କାହାପାଇଁ ରଖିବି ସରଳବଣୀ । ଦୁଃଖିଧନ ନୀଳମଣି ରେ । ଘୋଷା । ମାଆ ମାଆ ବୋଲି ଡାକିବ କିଏ, ଗୋରୁ ଘେନି ବନେ ଫେରିଲେ ପୋଏ, କାହାପାଇଁ ଧନ, ବସିବି ଜଗିଣ, ଭୁଞ୍ଜାଇବି ଅନ୍ନ କାହା ମନଜାଣି । ୧ । ମୋ ସଙ୍ଗରେ କିଏ କରିବ ଅଳି, କୋପହୋଇ ଅଙ୍ଗେ ବୋଳିବ ଧୂଳି, ନେତ୍ରୁ ଅଶ୍ରୁଧାର, ପଡ଼ନ୍ତେ ରେ ତୋର. ପୋଛି ଦେବି ଧରି ମୋ ପଣନ୍ତ କାନି । ୨ । ଦୁଧସର ଛେନା ଖଣ୍ଡ ବସାଦହି, ରଖିବି ଯୋଗାଇ ଆଉ କାହିଁପାଇଁ, ହୋଇଲେ ଉଚ୍ଛୁର, ଚଳିବୁ କୁମର ସେଥିପାଇଁ ମୋର ଅଧିକ ଭାଳେଣୀ । ୩ । ଯେବେ ମଧୁପୁର ଯିବୁରେ କହ୍ନାଇ, କାହାକୁ ମାଗିବୁ ଷୁଧା ହେଲେ ଯାଇଁ, କହେ ବଇଷ୍ଣବ, ନିଶ୍ଚେ ଲୀବ ଯିବ, ମୁରୁଛି ନୋହିବ ଯେଣୁ ନୀଳମଣି । ୪ ।

ଯଶୋଦାଙ୍କୁ ଶ୍ରୀକୃଷ୍ଣଙ୍କର ପ୍ରବୋଧ ।

ଅଗୋ ଗର୍ଭଧାରୀ ମାତା ଜାଣିକି ମୋ ପାଇଁ । ଏତେ ଚିନ୍ତା କରୁ-ଅଛ ଚିତ୍ତେ ଖେଦ ଦେଇ ଗୋ । ମାମୁଁ ଘର । ଯିବାପାଇଁ କିସ ଅଛି

ଉର ଗୋ ।୧। ରହ୍ନଦନ ଗୃହ ଫେରି ଆସିବ ତୁରିତେ । ଗୃହେ ରହି ସୁକଲ୍ୟାଣ କରୁଥିବ ମୋତେ ଗୋ । ଦୂତ ଆସି । ରଥଘେନ ଦ୍ୱାରେ ଅଛୁ ବସି ଗୋ ।୨। ନ ଗଲେ ହୋଇବ କଂସ ମନେ ଅତି ରୋଷ । ଧନୁଯାତ୍ରା ଦେଖି ବେଗେ ଆସିବୁ ଅବଶ୍ୟ ଗୋ । ଏଥି-ପାଇଁ । ଭାବନା କରୁଛ କାହିଁପାଇଁ ଗୋ ।୩। ଗୋପାଳ ବାଳକମାନେ ସଙ୍ଗେ ଯିବେ ମୋର । ଦୁଧ ଦହି ଭାରମାନ ନେବେ ଯେ ଯାହାର ଗୋ । ମଧୁପୁରୀ । ବେନ ନନ୍ଦ ଦେଖିବ ମୋହରି ଗୋ । ୪ । ଯିବେ ବଡ଼ଭାଇ ସଙ୍ଗତରେ ହଳଧର । କି କରିବ ଆମ୍ଭର ସେ କ୍ରୁର କଂସାସୁର ଗୋ । ବଇଷ୍ଣବ । ନ ଦେଖିଣ ଅନାଥ ହୋଇବ । ୫ ।

ଗୋପୀମାନଙ୍କ ପ୍ରବେଶ ଓ ଅକ୍ରୂରକୁ ବିନୟ ।

( ଗଲାଣିତ ଗଲା କଥାରେ ସଙ୍ଗୀତ - ବୃନ୍ଦ )

ନ ନିଅ ଆମ୍ଭ ଶ୍ରୀହରି ରେ ଅକ୍ରୂର, ଗୋପିଙ୍କି ଅନାସ୍ଥ କରି । କଲେ ଇନ୍ଦ୍ର କୋପ, କେ ରଖିବ ଗୋପ, ଶ୍ରୀକରେ ମନ୍ଦର ଟେକି ରେ । ପଦ । ଜଳରେ ପୂରାଇ, କଉତୁକ ଭ୍ୟାପ୍ତି, ବସ୍ତ୍ର କେ କରିବ ଚୋରି । ଦଧିବିକ୍ରି ଗଲେ ମଥୁରା ହାଟକୁ ଘାଟ କେ ମାଗିବ ଘେରି ରେ ।୧। କେ ଭୂତ ହୋଇବ, ଲବଣୀ ଖାଇବ, ଘରେ ପଶିକରି ଚୋରି । କିଏ ରତିପାଇଁ, ହୋଇବ ବିନୟୀ, ମାଗିବ ଅଞ୍ଚଳ ଧରି ରେ ।୨। କଦମ୍ବମୂଳେ ରହି, ମୁରଲୀ ବଜାଇ ଡାକିବ କେ ନାମଧରି । ସଖାଗଣ ସଙ୍ଗେ, ବୃନ୍ଦାବନେ ରଙ୍ଗେ, ଚରାଇବ କେ ବାଛୁରୀ ।୩। କେ ନାବିକ ହୋଇ, ଜଳଘାଟେ ରହି, ଗୋପିଙ୍କି କରିବ ପାରି । କହେ ବଇଷ୍ଣବ, ଦୁଃଖ ଦୂର ହେବ, ସୁମରଣା କର ହରି ହେ ।୪।

ଗୋପିମାନଙ୍କର ଶ୍ରୀକୃଷ୍ଣ ପ୍ରତି ।

ଯେବେ ଏତେ କଥା ଥିଲି ଚିନ୍ତାମଣି ତତେ ମୋତେ ନ କହିଲ । ଫୁଲପରି କରି ଧରିଥିଲୁ ଟେକି, ଏବେ କରୁଡ଼ଣ ଦେଲ । ହେ କାହ୍ନୁ ତୁମ୍ଭ କଥା କି ଭୂଲିବୁଁ ମନୁ । ତନୁ ଖୀଣ ହେବ ଧନୁ

ଦନୁ । ୧ । ଏତେ ଗୋପାଳୁଣୀ, ମହତକୁ ଘେନ, କପାଁଇ କର ଅନ୍ତର । ବାଇ ବଂଶୀସ୍ୱନ, ମୋହି ଆମ୍ଭମନ, ଏବେ କରୁଅଛ ପର ହେ । କାହ୍ନୁ । ତୁମ୍ଭ ନେଦେ ଅଛୁ ଫୁଲ ଧନୁ । ଘଟେ ଡାକଦେବୁ ବୃନ୍ଦାବନୁ । ୨ । ଛାଡ଼ି ପତି ପୁତ୍ର, ତୁମ୍ଭ ପ୍ରେମେ ରତ, ହୋଇଥାଉ ସଦାକାଳେ । କରୁଛ ନିଅାଶା, ବୁଡ଼ାଇ ସରସା, ଦେଉଅଛ ହିନ୍ଦୁଳେ ହେ । କାହ୍ନୁ । ମୀନ ବର୍ତ୍ତିବ କି ଜଳବିନୁ । ଛାର ଜୀବନକୁ ତୁଚ୍ଛମଣୁ । ୩ । ଦେଖିଣ ତୋ ମୁଖ, ହରୁଁ ସବୁ ଦୁଃଖ ପାଶୋରିବୁ ଏବେ ସବୁ । ଅଡ଼ାଇ ଦନକୁ ବଢ଼ାଇଣ ପ୍ରୀତି, ଛଡ଼ାଇ ଦେଉଛ ବାବୁରେ । କାହ୍ନୁ । କ୍ଷୀରେ କ୍ଷାର ଦିଅ ଜାଣୁ ଜାଣୁ । ବୈଷ୍ଣବ ଗୃହେ ପାଦ ରେଣୁ । ୪ ।

ଗୋପିମାନଙ୍କୁ ଶ୍ରୀକୃଷ୍ଣଙ୍କର ପ୍ରବୋଧ ।

ଥାଅ ଗୋ ହଂସଗମନୀ ଯିବି ମଥୁପୁର ଗୋ । ନକର ସଂଶୟ ଶତେ ଆସିବି ସତ୍ୱର ଗୋ । ପଦ । ଜଳ ବାହ୍ନନରେ ମୀନ, ବଞ୍ଚି କି ପାରଇ ଦନ, ତୁମ୍ଭ ବାହ୍ନେ ତେସନ ମୁହିଁ ରାମାବର ଗୋ । ୧ । ତୁମ୍ଭ ଆମ୍ଭ ଯେତେ ଭାବ, ମନୁ କି ପାଶୋର ହେବ ଘଡ଼ି ଘଡ଼ି ତୁମ୍ଭ ସ୍ନେହ ପଡ଼ିବ ମନର ଗୋ । ୨ । ଗୃହଧନରେ ଫେରିବି, ଅସି ଗୋପରେ ମିଳିବି, ହାବ ଭାବ ଲଗାଇବି ଏ ସତ୍ୟ ମୋହର ଗୋ । ୩ । ଏତେଦନେ ମାମୁ ଘର, ଯିବାକୁ ଶରଧା ମୋର, କପାଁଇ ସକଳ ହୁଅ ରାମାବର ଗୋ । ୪ । ଶୁଭ ଅନୁକୂଳ ଏହି, ନ କାନ୍ଦ ନ କାନ୍ଦ ସହୀ, ବୈଷ୍ଣବ ଚରଣ କହି, ଆଶୀର୍ବାଦ କର । ୫ ।

ଅକ୍ରୂର ପ୍ରତି ଗୋପିମାନଙ୍କର ଶୋକ ।

ଦଣ୍ଡେ ରହ ରେ ଅକ୍ରୂର ରଥ ରଖ ପଥରେ । ମନମୋହନାକୁ ଦେଖି ଥାଉଁ ବେନି ନୟନରେ । ପଦ । ଅକ୍ରୂର ନାମ ବହୁ, କ୍ରୂର ସ୍ୱଭାବ ବହୁ, ଦୟା ଧରମ ନାହିଁ ତୋର ଶରୀରେ ।୧। କହୁଁ ଶ୍ରୀକର ଧରି, ନ ନିଅ ଆମ୍ଭ ହରି, ଅନ୍ଧକାର କରି ଗୋପପୁର ଭିତରେ ।୨। ଫେରିଯାଅ ତୁ ଏବେ, ରାମ କୃଷ୍ଣ ନ ଯିବେ, ଯାଉଁ କହୁ ତୋ

କଂସ ନୃପ ଆଗରେ । ୩ । ପତିତପାବନଙ୍କୁ ଦର୍ଶନ କରିବାକୁ ବୈଷ୍ଣବ ଚିତ୍ତ କରେ ସରାଗରେ । ୪ ।

### ଶ୍ରୀକୃଷ୍ଣ ରଥାରୋହଣେ ଗୋପୀଙ୍କ ବିଳାପ ।

ସତେ କି ଫେରି ଆସିବ ହେ ମାଧବ । ସତେ କି ଫେରି ଆସିବ । ଇନ୍ଦ୍ର କରନ୍ତି କୋପ, ନାଶିବ ବୋଲି ଗୋପ, ମନ୍ଦର କିଏ ଧରିବ । ଦାବାଗ୍ନିରୁ ଏଥର, ହୋଇଲୁ ଗୋପୀକୁଳ, ଗୁହାରି କିଏ ଶୁଣିବ ହେ । ଏବେ ବସି ରଥର, ହୋଇଲଣି ପଥର; ପାଶୋରି ସକଳ ଭାବ । ତୁମ୍ଭ ବିଚ୍ଛେଦେ ଆମ୍ଭେ, ପ୍ରାଣ ତେଜିବୁ ଯେବେ, ଚିତ୍ତରେ ମନେ କରିବ ହେ ।୨। ରାସକ୍ରୀଡ଼ା ବାସକେଳି, ସବୁ ଗଲଣି ପାଶୋରି, ଦରଦ କିଏ ବୁଝିବ । ଜାଣିଲୁ ପୀତପଟ, ତୁମ୍ଭ ଶଠ କପଟ, କଲ ଯା ଛଟପଟ ଲଗାଇ ଯିବ ହେ ।୩। କେତେ କାଖରେ ଧରି, ବୁଲାଉଁ ଗୋପପୁରୀ, ସେ କଥା ଆଉ କି ମନେ ରହିବ । କଲା ଶ୍ରୀମୁଖ ଠାଣି, ନେଇ ବାଙ୍କ ଚାହାଣି, କେମନ୍ତେ ବୈଷ୍ଣବର ମନ ଭୁଲିବ ହେ । ୪ ।

---

ଶ୍ରୀକୃଷ୍ଣ ଆଜ୍ଞାଦେଲେ ଚଳାଅ ରଥ । ଗୋପୀ ଯାଇଣ ଆଗ୍ରେ ଓଗାଳି ପଥ ଯେ । ରହ ଅକ୍ରୂର । ଅନାଇ ଦିଶୁଅଛି ଗୋପନଗର ରେ ।୧। ନେଇ ପ୍ରତିମା ଯେବେ ଯାଅ ଆମ୍ଭର । ଦୟା ଧରମ ଚିତ୍ତେ ନାହିଁକି ତୋର ରେ । ତେଜିବୁଁ ଜୀବ । ସ୍ତ୍ରୀହତ୍ୟା ଦୋଷଟି ତୋତେ ଲାଗିବ ରେ ।୨। କଂସ ଡ଼ଗର ବୋଲି କରୁ କି ଅର୍ଥ । ସକଳେ ମିଳି ତୋତେ କରିବୁ ନଷ୍ଟ ରେ । ରାମ କୃଷ୍ଣଙ୍କୁ । ଦେଇ ଆମ୍ଭଙ୍କୁ ଛାଡ଼ି ଯାଅ ପୁରକୁ ରେ ।୩। ଅହେ ବଂଶୀବଦନ ନାହିଁକି କର୍ଣ୍ଣ । ଦାସୀମାନଙ୍କର ନ ଶୁଣ ବଚନ ହେ । ନାଶ ଜୀବନ । ନାଶିବାକୁ ବୈଷ୍ଣବ ମର୍ତ୍ତ୍ୟେ ଜନମ । ୪ ।

### କୃଷ୍ଣଙ୍କର ମଥୁରା ଗମନ ।

ଗୋପୀମାନଙ୍କୁ ବୁଝାଇ, ଶ୍ରୀକୃଷ୍ଣ ଘରକୁ ଦେଲେ ଫେରାଇ ଯେ ।
ଅକ୍ରୂର ରଥ ନଥଇ ବାହୁ । ସୁଜନେ ହେ । ୧

ଦେଖୁଁ ଦେଖୁଁ ରଘୁବର, ପ୍ରବେଶ ହୋଇଲେ ଯମୁନାତୀରେ ହେ ।
କରଯୋଡ଼ି ଜଣାଏ ଅକ୍ରୂର । ସୁଜନେ ହେ । ୨ ।
ଏଠାରେ ଯମୁନା ନଈ, କରନ୍ତୁ ସ୍ନାହାନ ରଥୁଁ ଓହ୍ଲାଇ ହେ ।
ଅଙ୍ଗୁ ଶ୍ରମଝାଳ ଯାଏ ବନ୍ଧୁ । ଶ୍ରୀହରି ହେ । ୩ ।
ଅକ୍ରୂର ବଚନ ଶୁଣି, ଆଜ୍ଞା ଦେଲେ ପ୍ରଭୁ ଶାରଙ୍ଗପାଣି ହେ ।
ବଡ ଗ୍ରୀଷମ ଅସି ହେଲାଣି । ଅକ୍ରୂର ରେ । ୪ ।
ରଥ ରଖ ଏହିଠାରେ, ସ୍ନାହାନ ସାରି ହୋଇଣ ତତ୍ପର ହେ ।
ଆଜ ପ୍ରବେଶିବା ମଧୁପୁର । ଅକ୍ରୂର ରେ । ୫ ।
ଶ୍ରୀମୁଖରୁ ଆଜ୍ଞାପାଇ, ଜଳରେ ପଶି ସ୍ନାହାନ କରଇ ଯେ ।
ଜଳେ ବୁଡ଼ି କୃଷ୍ଣଙ୍କୁ ଦେଖଇ । ଅକ୍ରୂର ଯେ । ୬ ।
ଦେଖିଲା ଶ୍ରୀ ଭଗବାନ, ରତ୍ନ ସିଂହାସନେ ବିରାଜମାନ ଯେ ।
କରେ ଗଦାପଦ୍ମ ସୁଦର୍ଶନ । ଅକ୍ରୂର ଯେ । ୭ ।
ପୁଣି ଦେଖିଲା ଅକ୍ରୂର, ରଥ ପରେ ବିଜେ ରାମ ଶ୍ରୀଧର ଯେ ।
ଦେଖି ମନରେ ହୁଏ କାତର । ଅକ୍ରୂର ଯେ । ୮ ।
ପୁଣି ଜଳରେ ବୁଡ଼ିଲା, ପୂର୍ବ ପ୍ରାୟେ ରାମକୃଷ୍ଣ ଦେଖିଲା ଯେ ।
ବାହ୍ୟ ବାହ୍ୟ ବୈଷ୍ଣବ ଭାଷିଲା । ସୁଜନେ ହେ । ୯ ।

## ଅକ୍ରୂରର ସ୍ତୁତି ।

ଜୟ ଜୟ ଚକ୍ରଧର, ଜୟ କରୁଣାସାଗର ।
ଦୀନହୀନ ଦାସ ପ୍ରତିବାରେ ଅନୁଗ୍ରହ କର । ପଦ ।
ଦୟାକର ମଧୁସୂଦନ, ଅହେ ଦେବକୀ ନନ୍ଦନ,
ଜନାର୍ଦ୍ଦନ ବଳଧ୍ୱଂସି, ପ୍ରଭୁ ଜଗତଈଶ୍ୱର । ୧ ।
ସ୍ତୁତି କରି ଶରତରେ, ରଥ ବାହଇ ସତ୍ୱରେ
ପ୍ରବେଶି ମଥୁରାପୁର ମଧୁବନ ଯେ ତୋଟାରେ । ୨ ।
ରାମକୃଷ୍ଣ ବେନଭାଇ, ରଥ ଉପରୁ ଓହ୍ଲାଇ
ତୋଟାରେ ବୁଲନ୍ତି ଯାଇ ସୁଖେ ବେନି ସହୋଦର । ୩ ।

ଅକ୍ରୂର ବୋଲେ ମୋ ପ୍ରଭୁ ଆଜକ ବିଶ୍ରାମ କର
କାଲି ପ୍ରଭାତରୁ ଉଠି ଭେଟ କଂସ ନୃପବର । ୪ ।

ମଥୁରାରେ ଶ୍ରୀକୃଷ୍ଣ ବଳରାମଙ୍କ ଗମନ ।

କାଠିକି ହାତ ମଣ୍ଡାପକ ହୋଇ ବେଣୁଧାରି । ରାଜଦାଣ୍ଡେ ଯାଉଛନ୍ତି ମନେ ଖୁସି ହୋଇ ।୧। ନଗର ଲୋକଙ୍କୁ ଦିଶନ୍ତି ନାରାୟଣ ପରି । ଖଳ ଜନଙ୍କୁ ଦିଶନ୍ତି ସାକ୍ଷାତେ କି ଐରି । ୨ । ରାକ୍ଷସଙ୍କୁ ଦିଶୁଛନ୍ତି ରାକ୍ଷସ ପ୍ରକାର । ଯୁବା ଯୁବତୀଙ୍କି କି ପୁରୁଷ ମନୋହର ।୩। ବଳରାମ କହୁଛନ୍ତି ଶୁଣରେ କହ୍ନାଇ । କିଏ ସେ ଆସୁଛି ଦୂରେ ଲୁଗା ଭାର ନେଇ । ୪ । ରାଜାର ରଜକ ପରି ମୋତେତ ଲାଗଇ । ଆସୁ ପାଶେ ପଚାରିବା କି ଜାତି ଅଟଇ ।୫। ଏତେ କହି ବେଣୁଧାରି କିଛିଦୂର ଯାନ୍ତେ । ଗୀତଗାଇ ବୈଷ୍ଣବ ମିଳିଲା ତୁରିତେ । ୬ ।

ନାହାର ହେଲା ରଜକ ବୁଢ଼ା ହୋ । କାନ୍ଧରେ ବହୁଛି ଲୁଗା ପୁଞ୍ଜୁଳା ହୋ । ପଦ । ବୃନ୍ଦାବନରୁ ତ ମଥୁରା ହେଲା । ମଧୁଆ ମାଆତ ଘଟରୁ ପଶିଲା । ୧ । ରାଜାଙ୍କର ସଭା ହେଉଛି ପରା । ଖୋଜା ହୋଇବ କେତେ ଜାମା ଯୋଡ଼ା ।୨। ମୁଣ୍ଡେ କାନ୍ଧେ ବହି ଲୁଗା ଭଣ୍ଡିରା । ଢେନ ରଜକ ମଥୁରାକୁ ଗଲା ।୩। ବାଟରେ ରାମକୃଷ୍ଣଙ୍କୁ ଭେଟିଲା । ବୈଷ୍ଣବଚରଣ ଗୀତେ କହିଲା । ୪ ।

ରଜକ ଓ ଶ୍ରୀକୃଷ୍ଣ ପ୍ରତ୍ୟୁକ୍ତି ।

ବୋଲନ୍ତି କହ୍ନାଇ, ହେ ରଜକ ଭାଇ, ଶୁଣ ଆମ୍ଭର ବଚନ । ଯାଉଅଛୁ କାହିଁ, ଆସ ଏଣେ ତୁହି, ନେଉ କାହାର ବସନ ରେ । କିସ ନାମ ତୋହର । ଫେଡ଼ି କହିବୁ ଆମ୍ଭ ଆଗର । ୧ । ବୋଲଇ ରଜକ, ଶୁଣରେ ବାଳକ, କାଳିକ ଲୁଗା କାଚଇ । ମଥୁରା ରାଜନ କଂସ ଯେ ରାଜନ, ତାହାଙ୍କ ବସନ ଏହି ରେ । ନେଉଅଛି ଦେବାକୁ ରାଜା ବିଜେ କରିବେ ସଭାକୁ । ୨ । ଶ୍ରୀକୃଷ୍ଣ ବୋଲନ୍ତି, ଶୁଣରେ ରଜକ, ରାଜାର ଭଣଜା ମୁହିଁ । ଦେଖିବା ଟିକେ ବାସ, ସାଜବକ ନାହିଁ

ଆମ୍ଭକୁ ଦଧି ପିଆଇ ରେ । ଆମ୍ଭେ ଯିବୁ ସଭାକୁ । ଯାଇଁ ଦେଖାଇବୁ ମଲ୍ଲମାନଙ୍କୁ । ୩ । କୋପଭର ହୋଇ, ରଜକ କହଇ, ଗୋପାଳ ଟୋକାଟା ତୁହି । ଗୋପରେ ଜନ୍ମିଲୁ ଅପକୀର୍ତ୍ତି କଲୁ, ବନରେ ଚରାଉ ଗାଈ ରେ । ବାଇ ହେଲୁ ଅଜ୍ଞାନ । ରାଜା ଲୁଗା-ପିନ୍ଧିବାକୁ ମନ ରେ । ୪ । ହୋଇ ଶ୍ରେଷ୍ଠ ଲୋକ କରୁଛୁ ଦମାକ, ଏକ୍ଷଣି ହୋଇବୁ ନାଶ । କୋପ ହୋଇ ହରି, ଧାଇଁଯାଇ କରି, ଧଇଲେ ରଜକ କେଶ ଯେ । ଏକ ଚାପଡ଼ ଘାତେ । ମୁଣ୍ଡ ଛିଣ୍ଡାଇ ଦେଲେ ତୁରତେ । ୫ । ରଜକ ମାରଣ, କ୍ରୋଧ ଶାନ୍ତକରି, ଚାଲିଯାନ୍ତେ ଖଣ୍ଡେଦୂର । ଦେଖିଲେ ଅଗ୍ରେ, ହିତବନ୍ତ ଭାବରେ ଆସେ ଯେଉଁ ଘନସାର ଯେ । ବଇଷ୍ଣବ କହନ୍ତି । କୁବ୍ଜ ଶ୍ରୀକୃଷ୍ଣ ପାଶେ ମିଳିଲା । ୬ ।

ରାମକୃଷ୍ଣ ପ୍ରତି କଂସର କୋପ ।

ଶୁଣିର ଗୋପାଳ ଟୋକାଟା ହେଲା ମୋତେ କଣ୍ଟା । ସମସ୍ତଙ୍କ ଆଗେ ମୋତେ କଲା ହଟହଟା । ୧ । ବାସ ଛଡ଼ାଇ ଧୋବାକୁ ମାଇଲା ମୋହର । ଦ୍ୱାରେ ଅଣି ଆଗେ ବେଗେ ମୋଡ଼ ତାର ଶିର ॥ କେଉଁ ସାହସ କରି ମୋ ବସ୍ତ୍ର ଛଡ଼ାଇଲା । ଗୋପିଙ୍କ ପାଲଟା ବସ୍ତ୍ର ପରିଧେୟ ମଣିଲା । ୩ । ଗୋପୀ ଗୋପାଳଙ୍କ ସଙ୍ଗେ ବନେ ବୁଲୁଥାଇ । କହେ ବୈଷ୍ଣବ କୁବୁଜା ଭେଟ କଲା ଯାଇ । ୪ ।

କୃଷ୍ଣକୁ ଦେଖି କୁବୁଜାର ଗୀତ ।

ଏ ତ୍ରିଭଙ୍ଗ ଚୂଳିଆ, ହେବେ କି ଏହି ଘନଶାମଳିଆ । ପଦ ।
ଏ ଯେ ପୀତବସନ, କରେ ଶଙ୍ଖ ଦହନ, କି ମନୋହର ବଂଶୀ-ବଦନ । ଦଶଇ କି ସୁନ୍ଦର, ଦରହାସ ଅଧର, ଗୁଞ୍ଜମାଳିଆ । ୧ । ଏ କର୍ପୂର ଚନ୍ଦନ, ଚୂଆ ଆଦି ଯେତନେ, ହୋଇ ନାଶଙ୍କ ମନ, ଦେବି ଏହାଙ୍କ ଅଙ୍ଗେ । ଦଶନ୍ତା କି ସୁନ୍ଦର ଯୁବତୀ ମନୋହର, କପ ମୂଳିଆ । ୨ । କଟିରେ ପୀତାମ୍ବର, ଉଡ଼ଇ ଫରହର, ଦେଖିଣ ମାରସର, ଅଙ୍ଗ ଦେଉଚି ଘାରି । ଯୁବତୀ ଜାତି ଛୁଞ୍ଚ, ଧରିପାରେ

କ ବର୍ତ୍ତୀ, ଦେଖି କାଳିଆ । ୩ । ମାଗିଟଲ ପୀତବାସ, କରନ୍ତି ମୁଁ ସୁବେଶ, ବାନ୍ଧ ଢଅନ୍ତ କେଶ, ବଞ୍ଚୁଅଛୁ ମୋ ଆସ । ହେବ ଏହାଙ୍କ ଦାସ, ବଇଷ୍ଣବର ଘୋଷ, ସେ କପାଳିଆ । ୪ ।

ଶ୍ରୀକୃଷ୍ଣ ଓ କୁବୁଜାର ପ୍ରତ୍ୟୁକ୍ତି ।

ପୃଚ୍ଛନ୍ତି ଶ୍ରୀହରି ଶୁଣ ଟଗୋ ନାଗରୀ, କ ଘେନିଯାଉ ଗୋ ତୁହି ॥ ଆମ୍ଭ ଲାଗି ହେଲେ, ନେବୁ କିଛୁ ଭଲେ, ମନ ଯେବେ ମଜ୍ଜିବଇ ।୧। ଶ୍ରୀକୃଷ୍ଣଙ୍କ ବାଣୀ, ଶୁଣି ସେ ରମଣୀ, ଆନନ୍ଦ ମନରେ କହି । ଶୁଣ ହେ ନାଗର, ରସର ସାଗର, ଅଙ୍ଗଲାଗି ଏ ଅଟଇ ॥ ଆଜ୍ଞା ହେଲେ ମୁହିଁ, ଶ୍ରୀଅଙ୍ଗରେ ନେଇ, କସାଇ ଦେବି ଲେପନ । ହେଉ ଢଅ ବୋଲି, କହି ଦୟନ୍ତେ ହରି, ପେଡ଼ି ଫେଡ଼ିଲା ବହନ । ୩ । ଅଗର ଚନ୍ଦନ, କରଣ ଯତନ, ଶ୍ରୀଅଙ୍ଗେ କରି ସୁବେଶ । ଦେଖି ହୃଷୀକେଶ ହୋଇଣ ସନ୍ତୋଷ, ଡାକିଲେ କୁବୁଜାକୁ ପାଶ । ୪ । ତା ପୃଷ୍ଠରେ କର, ଲଗାନ୍ତେ ଶ୍ରୀଧର, ହୋଇଲା ସେ ଦିବ୍ୟନାରୀ । ଅତି ମନୋହର, ରୂପଦେଖି ତାର, ବୈଷ୍ଣବ କହେ ବିସ୍ମରି । ୫ ।

କୁବୁଜାର ଉକ୍ତି ।

ହେ ମୋହନ, ଜାଣ କେତେ ହୃଦର । ଦେଖୁଁ ଦେଖୁଁ କଲ ମୋତେ ସୁନ୍ଦର । ପଦ । ତୁମ୍ଭେ ଅନ୍ତର୍ଯ୍ୟାମୀ ହେ ନାରାୟଣ । ମୋ ପୁରକୁ ଆଜ କର ଗମନ ହେ । ୧ । କେତେ ତପ କରିଅଛୁ ମୁଁ ପୂର୍ବେ । ଇନ୍ଦୀବର ଡୋଳା ପାଇଲି ଏବେ ହେ ।୨। ଶୁଣି ଶ୍ୟାମ ବୋଲନ୍ତି ଯାଅ ବାସେ । କଂସ ନାଶି ଆସି ମିଳିବି ପାଶେ । ୩ । ଏହିପରି କୁବୁଜାକୁ ବୁଝାଇ । ଧନୁଶାଳେ ଗଲେ ବୈଷ୍ଣବ କହି ॥

ଶ୍ରୀକୃଷ୍ଣଙ୍କର ସୁଦାମା ସହିତ ଭେଟ ।

କୁବୁଜାକୁ ବୁଝାଇଣ ଚଳନ୍ତେ କହ୍ନାଇ । ପଥେ ସୁଦାମାର ଘରେ ପ୍ରବେଶିଲେ ଯାଇ ।୧। ଶ୍ରୀକୃଷ୍ଣଙ୍କୁ ଦେଖିଣ ସୁଦାମା ଆଗେ ଯାଇ । ବେନିଚରଣକୁ ଧରି ଭୂମିରେ ଲୋଟଇ । ୨ । ତାହା ଦେଖିଣ

ଶ୍ରୀହରି ସୁଦାମାକୁ ଧରି । ଉଠ ଉଠ ମାଳାକାର ବୋଲି ଡେକିଲେ ତୋଳି । ୩ । ଆମ୍ଭ ବେନଭାଇଙ୍କି ଯେ ଦିଅ ପୁଷ୍ପହାର । ଶ୍ରଦ୍ଧାକରି ଅଛୁ ପିନ୍ଧି ଯିବୁ କଂସପୁର । ୪ । ଆଜ୍ଞା ପ୍ରମାଣେ ସୁଦାମା ଯେନି ପୁଷ୍ପହାର । ବେନଭାଇଙ୍କ ଗଳାରେ ପିନ୍ଧାଇ ସତ୍ୱର । ୫ । ଶୋଭା ଦେଖି ଲୋଭରେ ଥକିତ ମାଳାକାର । କହେ ବଇଷ୍ଣବ ନେତ୍ର ହୋଇଲା ସଫଳ । ୬ ।

## ରାମକୃଷ୍ଣଙ୍କର ଧନୁଗୃହେ ପ୍ରବେଶ ।

ଧନୁଗୃହରେ ପ୍ରବେଶ ହୋଇ ବେନଭାଇ। ରକ୍ଷୀମାନଙ୍କୁ ସମନ୍ ପୁରକୁ ପଠାଇ ସେ । ଧନୁ ଦେଖି ବିଚାରନ୍ତି । ବେନଖଣ୍ଡ କରି ଭାଙ୍ଗି ଦେବି ଯେ କହନ୍ତି । ୧ । ଧନୁ ରଟମଟ ନାଦ ଶୁଣିଲେ ଅସୁର । ଛଟପଟ ହେବ ମନେ ପାଇଲେ ଖବର । ଭାଙ୍ଗି ମଧୁବନେ ଯିବା । କାଲି ପ୍ରଭାତରେ ପୁଣି ଏଠାକୁ ଅସିବା । । ଏତେ କହିଣ ଧନୁକୁ ବେନକରେ ଧରି । ମୋଡିଦିଅନ୍ତେ ଭାଙ୍ଗିଲା ରଡ଼ମଡ଼ କରି । ଶବଦ କି ଘଡ଼ଘଡ଼ି । ଶୁଣି କଂସ ଜଗତରେ କରେ ଯିହରଡ଼ି ॥ କି ହେଲା କି ହେଲା ଆରେ କି ଶବଦ ଏହି । ପ୍ରବଳ ପବନେ କିବା ଭୂମିକମ୍ପ ହୋଇ । ପାପ ଆସି ଘେରିଲାଣି । କହେ ବଇଷ୍ଣବ ହେବୁ ଏଥର ମେଲାଣି । ୪ ।

## କଂସର ସ୍ୱପ୍ନ ।

ଆହା କି ସ୍ୱପନ ଦେଖିଲିରେ ଅଜ ଏହା ଦିନେ ଦେଖାନାହିଁ । ଗର୍ଦ୍ଦଭପୃଷ୍ଠରେ କରି ଆରୋହଣ ପ୍ରେତସଙ୍ଗେ ଯାଏ ମୁହିଁ । ମନ୍ତ୍ରୀ-ବର । ଆବର ଦେଖିଅଛଇ । ୧ । ଏକଇ ପୁରୁଷ ଲଗାଇଣ ତୈଳ ମନ୍ଦାର ଫୁଲକୁ ଧରି । ହୋଇଣ୍ଡି ଲଙ୍ଗଳା ଯେସନେ ମଙ୍ଗଳା ମୋ ପାଶକୁ ଅସେ ଗ୍ଭଲି । ମନ୍ତ୍ରୀବର । ଏହା କାହିଁକି ଦେଖିଲି । ୨। ଏକା ମୋର ଶତ୍ରୁ ଶ୍ରୀକୃଷ୍ଣ ଅଟନ୍ତି ତାକୁ ମନେ ଭୟ ଥିଲା । ସେ ମୋତେ ମାରିବ, ବୋଲି କି ଏପରି ଦେଖା ହେଉଅଛି ଭଲା । ମନ୍ତ୍ରୀବର । କର ସୁବିଚାର ସତ୍ୱର । ୩ । ପ୍ରଥମ ଦ୍ୱାରରେ ହସ୍ତିକି ରଖାଅ । ଦ୍ୱିତୀୟରେ ରଖ ମାଲ । ତହିଁରୁ ଉଭୁରି ଯେବେ ବଳି ମୋ ସଙ୍ଗେ

ହେବ ସମର । ମନ୍ତ୍ରୀବର । କ୍ଷଣକେ ମୋଡ଼ିବ ଶିର ।୪। ମାହୁନ୍ତକୁ ରାଜ, ଆଜ୍ଞାଦେଲେ କଂସ, ପ୍ରଥମ ଦ୍ୱାରେ ତୁ ଥିବୁ । ଆସିଲେ ସେ ଗୋର, ହସ୍ତିନେଇ ମାର, ଉପରୋଧ ନ କରିବୁ । ମାହୁନ୍ତରେ । ବୈଷ୍ଣବ ଗୀତରେ ଗାବୁ । ୫ ।

ମାହୁନ୍ତ ଓ ଶ୍ରୀକୃଷ୍ଣଙ୍କ ଯୁଦ୍ଧ ।

ବୋଲୁଅଛନ୍ତି ଅଚ୍ୟୁତ, ଶୁଣରେ ମୂଢ଼ ମାହୁନ୍ତ । ଆଡ଼ହୁଅ ଛାଡ଼ ବାଟ । କରିବୁ ମାମୁଙ୍କୁ ଭେଟ । ନ କର କଟାଳରେ । ଯିବୁ ଭିତରକୁ ହେଉଛି ଉଛୁର । ୧ । ଶୁଣି କହଇ ମାହୁନ୍ତ, ଶୁଣ ଆରେ ନନ୍ଦସୁତ, ରାଜା ଆଜ୍ଞା ନ ଏଡ଼ିବ । ଭିତରକୁ ନ ଛାଡ଼ିବ । ଅଟେ ଥିଲେ ବଳରେ । ଯାଅ ଭିତରକୁ ପେଲି ରେ ଗୋପାଳ ।୨। କୃଷ୍ଣ ବୋଲନ୍ତରେ ହୁଣ୍ଡା, କାହିଁ ଥିଲୁ ତୁହି ମେଣ୍ଢା, ଖାଇ କଂସ-ରାଜା ଭାତ । ଗର୍ବ ହୋଇଛି ବହୁତ । ଛାଡ଼ ଛାଡ଼ ପଥରେ । ଯୁଝିଯାଅ ବାଟୁ ଯେବେ ଶୂରହୁଁ ହତ ।୩। ଶୁଣି ମାହୁନ୍ତ ବୋଲଇ, ଗୋପାଳ ଟୋକାଟା ତୁହି । ବଢ଼ିବଢ଼ି କହୁ କେତେ, ଜାଣୁ ନାହୁଁ କରେ ମୋତେ, ଇଷ୍ଟ ତୋ ସୁମର । ହସ୍ତୀପାଦେ ଏହିକ୍ଷଣି ହେବୁ ଚୂର ।୪। କୃଷ୍ଣ ବୋଲନ୍ତି ଚଣ୍ଡାଳ, ପୂରିଲାଣି ତୋର କାଳ । ହସ୍ତୀସହିତରେ ତୋର, ଯମପୁରେ ହେବ ଘର । ଥାଉ ତୋର ଠାଣ । ଯୁଦ୍ଧକର ଅସ ଦେଖୁଁ ଶୂର ପଣରେ ।୫। ଶୁଣି ଶ୍ରୀକୃଷ୍ଣଙ୍କ ଗିର, ରାଗେ ହୋଇ ଜର ଜର । ହସ୍ତୀକି ଦେଲା ଚଳାଇ, ଶ୍ରୀକୃଷ୍ଣ ଉପରେ ନେଇ, ମଥିବା ନାଗରା । ଦେଖି ବଢ଼କଲେ କାନ୍ଦନ୍ତି ମୁଣ୍ଡକୋଡ଼ । ୬ । ଏହା ଦେଖି ହରିଧାଇଁ, ହସ୍ତୀଶୁଣ୍ଡ ଧରି ରହି, ଲଙ୍ଘାଧରି ହଳପାଣି, ବୁଲାଇଲେ ତତକ୍ଷଣି । ଯେହ୍ନେ ଖୁଆ ଦଣ୍ଡ । ମୁଷ୍ଟିପ୍ରହାରେ ଭାଙ୍ଗିଲେ ହସ୍ତୀମୁଣ୍ଡ । ୭ । ପୁଣି ମାହୁନ୍ତ ମାରଣ, ବଳେ ହରି ସଙ୍କର୍ଷଣ, ରଙ୍ଗସଭାରେ ମିଳିଲେ । ମାଲଙ୍କ ସଙ୍ଗେ ଯୁଝିଲେ । ବୈଷ୍ଣବ କହଇ । ମାଲମାନଙ୍କୁ ନାଶିଲେ ବେଗଧାଇ ।।

### କଂସ ପ୍ରତି ମଥୁରାନାରୀଙ୍କର ଘୃଣା ।

ମଥୁରାନାରୀ ସକଳେ, ଧାଇଁଣ କୃଷ୍ଣଙ୍କୁ ଧଇଲେ କୋଳେ ଯେ । ହେଳ ହୋଇ ମୁଖେ ଚୁମ୍ବ ଦେଲେ । ସକଳେ ଯେ । ୧ । କେଉଁ ରମଣୀ କହଇ, ଏତ ନନ୍ଦରାଜା ପୁଅ ନୁହଇ ଯେ । ଦେଖି ମାର ମରମେ ଦହଇ । ସଜନି ଗୋ । ୨ । କେ ଲଭାଲେ ମୀନକେତନ । କରିବାକୁ ନାରୀ କୁଳ ପତନ ଯେ । ମର୍ତ୍ତେ ହୋଇଅଛନ୍ତି ଜନମ । ସଜନି ଗୋ । ୩ । ଏ ବେନି ଯଶୋଦା ଧନ । କେମନ୍ତେ କରୁଛି କଂସ ନିଧନ ଯେ । ସତବଳେ ତା ମନ କେସନ । ସଜନି ଗୋ ॥ ହେଉ କଂସକୁ ମରଣ । ହେ ଧର୍ମଦେବ ରଖ ଏହା ପ୍ରାଣ ଯେ । ବଇଷ୍ଣବ ତୋ ପାଦେ ଶରଣ । ଶ୍ରୀହରି ହେ । ୫ ।

### କୃଷ୍ଣଙ୍କ ପ୍ରତାପେ କଂସର ଭୟ ।

ଯମୁନାକୂଳିଆ, କଦମ୍ବମୂଳିଆ, ଫେରିଯାଉ ଫେରିଯାଉ ରେ । ପୀତଦୁକୂଳିଆ, ବରଜ ଧୂଳିଆ, ଫେରିଯାଉ ଫେରିଯାଉ ରେ । ପଦ । ଗାଈ ଦୁହାଁଳିଆ, ଶିଖଣ୍ଡଚୂଳିଆ, ଯଶୋଦା କୋଳିଆ, ଏଡ଼େ କହାଳିଆ । ମୁଁ କି ତା ଭଳିଆ, ହେବ ସେ କାଳିଆ, ଫେରିଯାଉ ଫେରିଯାଉ ରେ । ୧ । ଜଣେ ଜଣେ କରି, ପଣେ ସାର ମୋର, ଜାଣିଲି ଜାଣିଲି ସମର ଭୂମିର । ଏଣିକ ଭଣଜା ପଣ ଜଣାଗଲା ଫେରିଯାଉ ଫେରିଯାଉ ରେ । ୨ । ଷଣ୍ଡାମରି ମାଇଁ, ଗଣ୍ଡେ ଚୁମ୍ବ ଦେଲା, ଶୁଣ୍ଡ ଧରି ହସ୍ତୀ ମୁଣ୍ଡକୁ ମୋଡ଼ିଲା । ବଇଷ୍ଣବ ଗୀରି କହରେ ଡଗର ଫେରିଯାଉ ଫେରିଯାଉ ରେ । ୩ ।

### କଂସ ପ୍ରତି କୃଷ୍ଣବଳରାମଙ୍କ ଅଭିମାନ ।

କେଉଁ ଦୋଷ ଦେଖି ଦେଉଛ ଉଦପେଷି ଆମ୍ଭଙ୍କୁ ମଥୁରାପୁରୁ । ଅକ୍ରୂର ପଠାଇ ଆଣିଲ ଡକାଇ ତଡ଼ିଦେଉଅଛ ଦୂରୁ । ଭଉଣୀର ପୁତ ଭଣଜା ଆମ୍ଭେ ତୁମ୍ଭର ତ । ୧ । ଆମ୍ଭେ ବେନିହୁଇ ଥଇଲୁ କର୍ପାଇ କରୁଥିଲେ ସବେ ନାହିଁ ନାହିଁ । ଅତି ଆନନ୍ଦରେ ଥିଲୁ ଗୋପପୁରେ ଖାଉଥିଲୁ କେତେ ଦୁଧ ଦହି । ଏହି ଅପମାନ । ଦେବାପାଇଁ ଆଣିଛ

ରାଜନ । ୨ । ଶରଧାରେ ମୁହିଁ ଅସିଅଛୁ ଧାଇଁ ମାମୁଁ ଘର ରହିବାର ପାଇଁ । ମାମୁଁ କାହିଁଛନ୍ତି ମାଇଁ କ କରନ୍ତି ଥରେ ମୋତେ ଦେଖା-କର ନେଇ । ଥଜା ମୋର ଛତ୍ରା । କଣିଦେବେ ପାଦକୁ ମୋ ଯୋଡା ।୩। ଏଡ଼ିକ ନଷ୍ଟୁର ହେଲେ ମାମୁଁ ଘର ତଡ଼ି ଦେଉଛନ୍ତି ଆଗ ମୋତେ । ଖାଇନାହୁଁ ଘିଅ ଶୁଣିବ ନନ୍ଦାତ ଜଗତଜନ ମୁଖରୁ କେତେ । ବଇଷ୍ଣବ ଭେଷ । ଯାଉଅଛୁଁ ହୋଇଣ ନଘ୍ଣ ।୪।

ଗୃଣୁର ମୁଷ୍ଟିକ ପ୍ରତି କଂସର ଆଦେଶ ।

କଂସ—ଅରେ ରେ ଗୃଣୁର, ଅରେ ରେ ମୁଷ୍ଟିକ,
ତୁମ୍ଭେମାନେ କରେ ଦେଖୁଅଛ କଉତୁକ ।
ଦେଖୁ ଦେଖୁ ସର୍ବନାଶ ହେଉଛି ମୋର,
ଗୋପାଲ ବାଳକ ମେଁ ତେ କଲେ ହରବର ।
ଏବେ ତାଙ୍କୁ ଯହିଁ ତହିଁ ଦେଖ ଦଅ ମାର,
ଯେପଣେ ପାଅ ବେଢ଼ିମାର ଦୟାମାୟା ଛାଡ଼ ।

ଗୃଣୁର—ଯେ ଆଜ୍ଞା ପ୍ରଭୁ !
ଆସ ଆସ କଏ ରେ ପାମର ଅଛ କାହିଁ,
ଆଜ ମଲ୍ଲ ଯୁଦ୍ଧରେ ବନାଷିବ ମୁହିଁ ।

ଶ୍ରୀକୃଷ୍ଣ—ଅରେ ଅରେ ମଲ୍ଲ !
ତୁମ୍ଭେମାନେ ଅଟ ଦୁହେଁ ମତ୍ତହସ୍ତୀ ପରି,
ବାଳକଙ୍କ ସଙ୍ଗେ ଯୁଦ୍ଧ କରିବ କିପରି ।

ମୁଷ୍ଟିକ—ତୁମ୍ଭେମାନେ ମତ୍ତହସ୍ତୀ ମାରିଅଛ ପରା,
ଅମ୍ଭ ସହିତରେ ଯୁଦ୍ଧେ ଦଅ ଆଜ ଧରା ।

ଶ୍ରୀକୃଷ୍ଣ—ଅପେ ମରିଗଲା ତାର ପୂରିଥିଲା କାଳ,
ଅମ୍ଭେ କିପରି ମାଇଲୁ ବ କୁତ କୁମର ।

ଗୃଣୁର—ମରଣକାଳେ ଶଂକଲେ ଯିବ କ ଉବୁର,
ତୁମ୍ଭ ଦୁହିଁକରେ ଅଜ୍ଞ ପକାଇବୁ ମାରି ।

ଶ୍ରୀକୃଷ୍ଣ—ମାରିବାର ଇଚ୍ଛାହେଲେ ମାର ରହି ଦୂରୁ,
ମାଡ଼ଖିଆ ଅଦ୍ଭୁତ ଅମ୍ଭେ ମାଡକୁ ନ ଡରୁ ।
ମୁଷ୍ଟିକ—ଛାଡ଼ ବାକ ଚତୁରି ଆସ ଯୁଦ୍ଧ କରିବାକୁ,
କେତେ ରଜା ଆସିଛନ୍ତି ରଣ ଦେଖିବାକୁ ।
ଶ୍ରୀକୃଷ୍ଣ—ଏତେଡ଼ ଏଡ଼େ ମଲ୍ଲ ହୋଇ ପିଲାକୁ ମାରିବ,
ଏତ ଅନ୍ୟାୟ କେମନ୍ତେ ଧରମ ସମ୍ଭବ ।
ମୁଷ୍ଟିକ—ଧରମ କରମ କିଛି ନ ଜଣା ଆମ୍ଭଙ୍କୁ,
ଆସ ମୁଷ୍ଟାଘାତେ ଚୂର୍ଣ୍ଣ କରୁଛି ତୁମ୍ଭଙ୍କୁ ।
ଶ୍ରୀକୃଷ୍ଣ—ହେଉ ତେବେ ଆସ ଆସ ବେଗେ ଯୁଦ୍ଧକର,
ରକ୍ଷାନାହିଁ ମୃତ୍ୟୁମୁଖୁଁ ନିସ୍ତାର ତୁମ୍ଭର ।



ଏତେ କହି ବେନବୀରେ ଯୁଦ୍ଧ ଆରମ୍ଭିଲେ ।
ବାହୁଯୁଦ୍ଧେ ଠେଲାଠେଲି ମରାମରି ହେଲେ ॥
ଧରି ବଜ୍ରମୂର୍ତ୍ତି ହରି ବିଧାଏ ମାଇଲେ ।
ମୁଷ୍ଟିଘାତେ ବେନବୀର ଯମପୁର ଗଲେ ॥
ଚାଣୁର ମୁଷ୍ଟିକ ମାରି ଦେବ ଭଗବାନ ।
କଂସ ସମ୍ମୁଖକୁ ଗମିଲେ ବୈଷ୍ଣବ ଚରଣ ॥

---

ଦେବକୀ ପ୍ରତି କଂସର କୋପ ।

ଛାଡ଼ ଛାଡ ରେ ନଗର ଆଡ଼ହୁଅ ତୁମ୍ଭେ,
ଦେବକୀର ମୁଣ୍ଡ ଯାଇଁ କାଟିବି ମୁଁ ବେଗେ ।
ମୂଢ଼ ବସୁଦେବ ବୃଦ୍ଧ ହୋଇ ବସିଅଛି,
କେ ଜର ଛୁଆକୁ ନେଇ ଗୋପରେ ଛାଡ଼ିଛି ।
ତୋଡ ମାଛ ପରି ଯାଇ ମୋଡ଼ି ତାଙ୍କ ବେକ,
ଯୋଡ଼ା ଯୋଡ଼ା ମଲ୍ଲ ମୋର ପଡ଼ିଛନ୍ତି ଦେଖ ।
କେଡ଼େବଡ଼ ହାତୀ ମୋର ପତ୍ରକେ ମାଇଲେ,
ଧିକ୍କ ଧିକ୍ ହୋଇ ଛାତି ତାଙ୍କପାଇଁ ଥରୁ ।

ଏତେକି କହି ଖଡ୍ଗ ନେଇ ବାହାର ହୋଇଲା
କହେ ବଇଷ୍ଣବ ଦେବକୀର ପାଶେ ହେଲା ।

ଦେବକୀର ବେଦନ ।

ଭାଇ କଂସ କେଉଁ ଦୋଷ କଲି ମୁହିଁ । କାଟିବୁ ମୋ ଶିରି
ଅକାରଣେ ଭାଇ । ପଦ । କେତେ ସହି ଗର୍ଭକଷ୍ଟ । ନାଶିଲୁ ତା କରି
ହଠ । ଜନ୍ମକଲି ଛଅପୁଅ ଦେଲି ନେଇ ରେ ।୧। ହୋଇ ରାଜାର
କୁମାରି, ଭାଇ ଥାଉଁ ତୋହପରି, ଏତେ ରହି ମୁହିଁ ବନ୍ଦଶାଳେଥାଇ
ରେ ।୨। ହାତ ଗୋଡ଼େ ଲୁହା ବେଡ଼ି, ବେଣ୍ଟିତ ଗଲାଣି ପଡ଼ି,
ଅନ୍ଧପରି ରହି ଚନ୍ଦ୍ର ସୂର୍ଯ୍ୟ ଦେଖି ନାହିଁରେ ।୩। ଧରୁଅଛି ତୋର
କର, ବିନାଦୋଷରେ ନ ମାର, ବଇଷ୍ଣବ ବୋଲେ ଚନ୍ଦ୍ର ସୂର୍ଯ୍ୟ-
ଛନ୍ଦ୍ର ଗୁହିଁରେ ।୪।

କଂସର ଛନକା ।

ଆସିଲା ଆସିଲା କୃଷ୍ଣ ଆସିଲା ରେ । ପୂତନାପରି କି ମୋତେ
ଶୋଷିଲା ରେ । ପଦ । କାଳସର୍ପପରି ମୋତେ, ଦେଖି ଯାଉଅଛି
ନେତ୍ରେ, ଫୁଫୁ କରି କିବା ମୋତେ ଦଂଶିଲା ରେ ।୧। କପି ତାଙ୍କୁ
ଅଣାଇଲି, ମାଲଗଜ ମରାଇଲି, ଧନୁଭାଙ୍ଗି ଯଜ୍ଞଶାଳେ ପଶିଲା ରେ ।।
ଆସି କି ବ୍ରହ୍ମରାକ୍ଷସ. କରୁଅଛି ମୋତେ ଗ୍ରାସ, ଉଡ଼ୁଛି ମୋର ସାହସ
ଆସିଲା ରେ ।୩। ଏସନ ସମୟେ ଯାଇଁ, ରାମକୃଷ୍ଣ ବେନଭାଇ,
ଭିତରେ ଯାନ୍ତେ କଂସକୁ ଦେଖିଲେ ରେ ।୪। କାତର ହୋଇ ପୁଚ୍ଛଇ,
ଏହି ରାମକୃଷ୍ଣ ଦୁଇ, ଏହି କହୁଣ ମଞ୍ଚାରୁ ଖସିଲା ରେ ।୫। ତଳେ
ପଡ଼ି ମୃତ୍ୟୁ ହୋଇ, ଦେଖନ୍ତି ରାମ କହ୍ନାଇ, ବୈଷ୍ଣବଚରଣ
ଗୀତେ ଭାଷିଲା ରେ ।୬।

କଂସ ମୃତ୍ୟୁରେ ରାଣୀଙ୍କ ଶୋକ ।

କେଣିକି ଗଲ ରାଜନ । କାହା ମୁଖ ଦେଖି କାଟିବୁ ଦିନ ହେ ।
ଆଜଠାରୁ ହେଲା ସର୍ବ ଶୂନ୍ୟ । ରାଜନ ହେ ।୧।

କେତେ ବଡ଼ ବୀରଥିଲ । କେତେ ଅସୁରଙ୍କୁ ପାଦେ ମର୍ଦ୍ଦିଲ ହେ ।
ଘୋର ବାଳକଙ୍କୁ ଦେଖି ମଲ । ରାଜନ ହେ । ୨ ।
ଅନେକଶତ ପାଟରାଣୀ । ରଣ୍ଡ କରିଗଲ ମଉଡ଼ମଣି ହେ ।
କେ ପଗ୍ଭରିବ ଆମ୍ଭଙ୍କୁ ପୁଣି । ରାଜନ ହେ । ୩ ।
ମନ୍ଦ ଦଇବ କି କଲୁ । ସୁବର୍ଣ୍ଣ ପ୍ରତିମା ଛଡ଼ାଇ ନେଲୁ ହେ ।
ଆମ୍ଭମାନଙ୍କୁ ଅନାଥ କଲୁ । ଦଇବ ରେ । ୪ ।
କେଉଁ କାଳେ ମୁଣ୍ଡକୋଡ଼ି । କେ ମୃତ୍ୟୁପିଣ୍ଡଧରି କୋଳକରି ହେ ।
ଗଲ ସବୁ ସ୍ନେହ ଦୂରକରି । ରାଜନ ହେ । ୫ ।
ନବ ଯୁବାକାଳେ ଛାଡ଼ି । ଭୂମିରେ ଶୋଇଅଛ ମୁହଁମାଡ଼ି ହେ ।
ବୈଷ୍ଣବଙ୍କୁ ନରମାଗି କରି ରାଜନ ହେ । ୬ ।




Printed by H. K. Das, Chandrodaya Press, Cuttack

# ବିଜ୍ଞାପନ ।

ନିମ୍ନଲିଖିତ ପୁସ୍ତକମାନ ଉକ୍ତ ଠିକଣାରେ ବିକ୍ରୟାର୍ଥେ ଅଛି। ଅଗ୍ରୀମ ଖର୍ଚ୍ଚା ମଗାଇଲେ ଅଧିକ କମିଶନ ଦିଆ ଯାଏ । ପତ୍ର ପଠାଇବା ବେଳେ ନାମ, ଧାମ, ପୋଷ୍ଟାଫିସ୍ ଜିଲ୍ଲା ସ୍ପଷ୍ଟରୂପେ ଲେଖିବେ ।

| | |
|---|---|
| ଅନୁଲିପି ଓ ବନ୍ଧଲିପି | ଟ ୨ /୭ |
| ଅଙ୍ଗଦରାବଣଦାୟିକା | ଟ ୦ ୯୭ |
| ଅଙ୍ଗଦପଣ୍ଡି | ଟ ୦ ୷ |
| ଅଶ୍ୱମେଧଯଜ୍ଞ | ଟ ୦ ୷ |
| ଅଗ୍ନି ପୁରାଣ | ଟ ୦ ୩/ |
| ଅଲଙ୍କାରବୋଲି | ଟ ୦ / |
| ଅପରାଜିତା ସ୍ତୋତ୍ର | ଟ ୦ ୯୭ |
| ଅମରକୋଷଗୀତା | ଟ ୦ ୷ |
| ଅମରକୋଷ ଅଭିଧାନ | ଟ ୧ ୯ |
| ଏଗ୍ନ ସ୍ୱର୍ଗ ଟେସ୍ଟ | ଟ ୦ ।୷ |
| ଅଧ୍ୟାତ୍ମରାମାୟଣ (ସମ୍ପୂର୍ଣ୍ଣ) | ଟ ୨୫ |
| ଅମରକୁମର | ଟ ୦ ୫ |
| ଅମ୍ବିକାଦେଇ କାନ୍ଦ | ଟ ୦ ୷ |
| ଅଷ୍ଟକମାଳା | ଟ ୦ ୷ |
| ଅଷ୍ଟୋତ୍ତର ଶତନାମ | ଟ ୦ ୯୭ |
| ଅଳଗାଜାନଶାକ | ଟ ୦ ୯୭ |
| ଆମେ ଜଣେ | ଟ ୦ ୷ |
| ଆରତନାଶ ଚଉତିଶା | ଟ ୦ ୯୯ |
| ଆରବ୍ୟକୁସମ ୪ର୍ଥ | ଟ ୦ । |
| ଇତିହାସ ପୁରାଣ | ଟ ୧ ୯ |
| ଉତ୍କଳ କାହାଣୀ ୧ମ ଭାଗ | ଟ ୦ ୫ |
| ଏଗ୍ନ ୨ୟ | ଟ ୦ ୫ |
| ଉପେନ୍ଦ୍ରଭଞ୍ଜ ସଙ୍ଗୀତ | ଟ ୦ /୭ |
| ଉଦାହରଣ ଶ୍ଲୋକ | ଟ ୦ ୷ |
| ଏକାଦଶୀମାହାତ୍ମ୍ୟ | ଟ ୦ ୫ |
| କମଳାକାନ୍ତ ଚଉତିଶା | ଟ ୦ / |
| କାନ୍ତକୋଇଲି | ଟ ୦ ୯୩ |
| କଳାମାଣିକ | ଟ ୦ ୯୭ |
| କାର୍ତ୍ତିକମାହାତ୍ମ୍ୟ | ଟ ୦ ୫ |
| କାଳିକାଅଷ୍ଟୋତ୍ତର ଶତନାମ | ଟ ୦ ୯୭ |
| କୀର୍ତ୍ତନକୁସୁମ | ଟ ୦ ୩/ |
| କେଳାକେଳୁଣୀ ମୁଅଙ୍ଗ | ଟ ୦ / |
| କପଟପାଶା | ଟ ୦ /୭ |
| କମଳଲୋଚନ | ଟ ୦ ୯୭ |
| କଳାକୌତୁକ | ଟ ୦ ୷ |
| କଳାକଳେବର କନ୍ଦାଇ | ଟ ୦ ୯୭ |
| କିଶୋରୀ ଚନ୍ଦ୍ରାନନଚମ୍ପୂ | ଟ ୦ ୷ |
| କୃଷ୍ଣକୋଇଲି | ଟ ୦ ୯୭ |
| କେଶବ କୋଇଲି | ଟ ୦ ୯୩ |
| କୋଇଲିମାଳିକା | ଟ ୦ / |
| କୌଶଲ୍ୟା କୋଇଲି | ଟ ୦ ୯୭ |
| କୌଶଲ୍ୟାବେଦନ ଚଉତିଶା | ଟ ୦ ୯୭ |
| ଖଣ୍ଡିରତ୍ନ | ଟ ୦ / |

ଉତ୍କଳୋଦୟ ପ୍ରେସ ଓ ଉତ୍କଳୋଦୟ ପୁସ୍ତକାଳୟ,
ବାଲୁବଜାର ପୋଃ ଅଃ ଚାନ୍ଦନୀଚୌକ, କଟକ । } ଶ୍ରୀ ହରେକୃଷ୍ଣ ଦାସ, ପ୍ରୋପ୍ରାଇଟର ।